ପ୍ରକାଶକ :

**ରାଧାଶ୍ୟାମ ମହାନ୍ତି**
**ସାଥୀ ମହଲ**
ବିନୋଦ ବିହାରୀ, କଟକ-୭୫୩୦୦୨

ପ୍ରଥମ ପ୍ରକାଶ :

୧୯୮୯

ମୁଦ୍ରଣ :

**ରେଖା ପ୍ରେସ**
ବାଙ୍କିସାହି, କଟକ-୭୫୩୦୦୯

**ମୂଲ୍ୟ : ଟ ୭-୦୦**

# ପିଲାଙ୍କ କଳରୁ କଣ ଶିଖିବା

ରାଧାମୋହନ ବାବୁ ଛୁଆମାନଙ୍କୁ ଖୁବ୍ ଭଲ ପାଆନ୍ତି । ସେ ଛୁଆମାନଙ୍କ ସାଥିରେ ଖେଳିବାକୁ ସୁଖ ପାଆନ୍ତି । ତାଙ୍କର ଦୁଇ ବରଷର ନାତିଟିଏ ଅଛି । ତାର ନାଆଁ ରତନ । ରତନ ଖୁବ୍ କଉତୁକିଆ ହୋଇଥାଏ । ଗୁଲୁଗୁଲିଆ କଥା କହେ । ତାକୁ କ୍ଷଣେ ନଦେଖିଲେ ରାଧାମୋହନ ବାବୁ ବାଇଆ ହୋଇ ଯାଆନ୍ତି । ନାତି ଉପରେ ତାଙ୍କର ଖୁବ୍ ସ୍ନେହ ।



ତାଙ୍କ ଘର ପାଖରେ ଛୋଟ ପିଲଙ୍କର ସ୍କୁଲ ଅଛି । ସେଇ ସ୍କୁଲରେ ରଘୁବାବୁ ଜଣେ ମାଷ୍ଟର । ତାଙ୍କର ବି ପୁଅଟିଏ । ତାର ନାଆଁ ରାଜା । ରାଜା ସାଥିରେ କିଏ ସବୁ

ହେବ ? ଦୁଷ୍ଟାମୀ ବି ତାର କିଛି କମ୍ ନୁହେଁ । ରାଜାକୁ ଖେଳାଇବା କାମ ହେଲା ଜଗାର । ଜଗା ମାଷ୍ଟରଙ୍କ ଘରେ ପିଲା ଦିନରୁ ରହି ଆସିଚି । ତାର କେହି ନାହାଁନ୍ତି ଦୁନିଆରେ । ତାର ବୟସ ଚାଳିଶି ପାଖାପାଖି । ସଂସାର ବି କରିଥିଲା । ରତନ ଆଉ ରାଜା ଏକାଠି ଖେଳନ୍ତି ।

ସେମାନଙ୍କ ଭିତରେ ଝଗଡ଼ା ହୁଏ । ତାକୁ ତୁଟାଇବା କାମ ହେଲା ଜଗାର । ଜଗା ସେସବୁରେ ଓସ୍ତାଦ । ହେଲେ ଟିକିଏ ବୋକା । ଭାରି ଏକଜିଦିଆଟା, ଯାହାବୁଝିଥିବ ନା, ସେଇଆ । ରାଜା, ରତନ ଖେଳୁ ଖେଳୁ ମାଡ଼ଗୋଳ କରନ୍ତି ।



ଅଡ଼ୁଆ ନ ତୁଟିଲେ ଜଗା ଚାଲିଆସେ ରାଧାମୋହନ ବାବୁଙ୍କ ପାଖକୁ । ରାଧାମୋହନବାବୁ ଛୁଆ ଦୁଇଟାଙ୍କୁ ବୁଝାଇ ଦିଅନ୍ତି । କାନ୍ଦୁଥିଲେ ହସାଇ ଦିଅନ୍ତି । ଛୁଆ ଦୁଇଟିଙ୍କୁ ବୋକ ଦେଇ କୋଳକୁ ଟାଣି ନିଅନ୍ତି । ଜଗା ଅବାକ୍ ହୋଇଯାଏ । ବାବୁ କଣ କମିଆଁ କରିଚନ୍ତି । ଯାହା ତା' ଦେଇ ହୁଏନି, ତାହା ବାବୁ କରି ଦିଅନ୍ତି । ନା-ବାବୁ ତାହେଲେ ଓସ୍ତାଦଟିଏ । ତାଠୁ ବଳି ଓସ୍ତାଦ । ରାଜା କାନ୍ଦି ଘରେ ତା ନାଆଁରେ

କହିବ । ରତନ ବି । କଳା ତୁଣ୍ଠାଇବା କାମ ଯଦି ତା ଦେଇ ନ ହେଲା, ଆଉ କ'ଣ ହେବ ?

ବେଳେ ବେଳେ ସେ ଚମକି ଉଠେ । ଝିଅଙ୍କର ଅଳି କ'ଣ କମ୍ ? ଏଇଟା ଦିଅ, ସେଇଟା ଦିଅ । ନହେଲେ ଧୂଳି ବାଲି ଫୋପଡ଼ା ଫୋପଡ଼ି ଚାଲେ । ରତନ ରୁଷିଯାଏ । ଗାଲ ମୁହଁ ଫୁଲାଇ କାନ୍ଦେ । ବେଳେ ବେଳେ ଭାବେ ନା—ଝିଅଙ୍କ କଥାରେ ସେ ଆଉ ମଥା ଘୂରାଇବନି । ହେଲେ ମାଷ୍ଟରବାବୁ ଆସିଲେ ଯୋଉ କଥାକୁ ସେଇ କଥା । ଜଗା ହସିଦିଏ । ଝିଅ ଦି'ଟାଙ୍କୁ ଖୁସି କରାଇ ନିଜେ ବି ଖୁସି ହୁଏ । ଏମିତି ନିତିଦିନ ଚାଲେ ।



ବେଳେ ବେଳେ ରାଧାମୋହନବାବୁ ଜଗାକୁ ପାଖରେ ବସାଇ ବୁଝାନ୍ତି । ଝିଅମାନଙ୍କର ଚାଲିଚଳଣି ବଡ଼ ବିଚିତ୍ର । ହାବଭାବ ବି କିଛି କମ୍ ନୁହେଁ । ଏକଥା ଥରେ ରାଧାମୋହନ ବାବୁଙ୍କୁ ସେ ପଚାରିଲା । ପିଲାଝିଲା ତାର କିଛି ନାହିଁ । ସଂସାର

କରିଥିଲି—ତା ଭାରିଯା ଆଉ ନାହିଁ । ଜଗା ବ ଦ୍ୱିତୀୟ ବାହା ହୋଇନ । ଗଜ ମୁରୁଖ ସେ । ଚିକିଏ କାଳି ଆଉ ଖନା । କ'ଣ ବୁଝିଲା କେଜାଣି ଦ୍ୱିତୀୟ ବାହା ହେବାକୁ ଜମା ମଙ୍ଗିଲାନ । ବେଳେ ବେଳେ ଆସି ରାଧାମୋହନ ବାବୁଙ୍କୁ ଏଣୁତେଣୁ ପଚାରେ ।

ରାଧାମୋହନ ବାବୁ ମନେ ମନେ ଜଗାକୁ ସୁଖ ପାଆନ୍ତି । ତାର ନିରୀହ ଢଙ୍ଗ ତାଙ୍କୁ ଭଲ ଲାଗେ । ହେଲେ ସବୁ କଥା ସେ ବୁଝି ପାରେନା । ଛୁଆ ଦି'ଟାଙ୍କୁ ବେଳେ ବେଳେ ଏକା କିଦ୍‌ଆ କରିଦିଏ । ରାଜା ରାହା ଧରି କାନ୍ଦି ପକାଏ । ରତନ ଧାଇଁଯାଏ କେଜଙ୍କ ପାଖକୁ । ବାସ ଏତିକିରେ ସବୁ ଶେଷ । ଜଗାର ବଳ ତ ସେଇଠୁ ଶେଷ । ତାର ବୁଦ୍ଧି ଅବା କେତେ ? ରାଜା ବାବୁ ମୁଁ ତୁମକୁ ବେଲୁନ ଦେବି ପେଙ୍କାଳି ଦେବି । ଏମିତି କେତେ କ'ଣ ସେ ଯାଚେ ।

ରତନ ବାବୁଙ୍କୁ ବି ହକାରେ ଖୋସାମତି କରେ । "ଆମ ରତନ ବାବୁ ସିନା ପୁଅ । ଜହ୍ନମାମୁଁଙ୍କୁ ସରଗରୁ ଆଣି ଦେବ" ରତନ ତ ରାଜା ଠାରୁ ବଳି । ଜଗା ବଡ଼ ଅଡ଼ୁଆରେ ପଡ଼ିଯାଏ । କି କାଳ ହେଲାରେ । ଏ ଯୁଗ ପିଲା ଏଡ଼େ ପାକିଲା ତାହାହେଲେ । ସେ କାଳ ଛୁଆପରି ମାଛିକୁ ମ' କହୁ ନଥିଲେ । ଆମେ କଣ ପିଲା ହୋଇ ନଥିଲୁ ? ହୁଁ, ମୁଁ ଆଉ ପାରିବନି ।

କଥା ଯାଇ ପଡ଼ିଲା ରାଧାମୋହନ ବାବୁଙ୍କ କାନରେ । ବାପରେ--ବାପ । ରାଧା ମୋହନ ବାବୁ ହସିଲେ । ରତନକୁ ଗୋଟିଏ ମୁଥା ଦେଇ ଘର ଭିତରକୁ ପଠାଇ ଦେଲେ । ଆଉ ରାଜା ତାଙ୍କ ବାଡ଼ିକି ଧରି ଏପଟ ସେପଟ ହେଉଥାଏ । ତା'

ହାତରେ ବ ଗୋଟିଏ ମୁଆଁ । ଦୁହିଁଙ୍କ କାନ୍ଦଣା ବ ବନ୍ଦ । ଏଥର ଜଗା ହସି ପଳାଇଲା । ଛାର ବେଲୁନଟା ପାଇଁ ଏତେ କାଣ୍ଡ ଘଟିଗଲା । ରାଧାମୋହନ ବାବୁ କ'ଣ ଗୁଣି ଗାରୁଡ଼ି ଶିଖିଛନ୍ତି ଏକାବେଳକେ ଛୁଆ ଦି'ଦଟା ଚୁପ ।

## ଛୋଟ ପିଲା କଣ ଶିଖନ୍ତି

ରାଧାମୋହନ ବାବୁ କହିଲେ—ଦେଖିଲୁ ଜଗା । ଏ ଛୁଆ ଦି'ଟା କେମିତି ତୁନ ପଡ଼ିଗଲେ ? ଆରେ ଏମିତି ଚାହୁଁଛ କ'ଣ ? ଜଗା କହିଲା - ବାବୁ ! ମୁଁ ତ ଜମାରୁ ପାରୁନ । କି କଳ ମୋଡ଼ି ଦେଉଚ ଯେ ଅକଲ ଗୁଡ଼ୁମ୍ ଛୁଆ ଦି'ଟାର ?

ରାଧାମୋହନ ବାବୁ ହସି ଦେଲେ । ଛୋଟ ଛୁଆ ବଡ଼ ଅବୁଝା । ଛୁଆର ମନ ବୁଝିବାଟା ହେଲା ଅସଲ ଚାବି କାଠି । ଆଜି ଯିଏ ଛୁଆ, କାଲି ସିଏ ବଡ଼ ମଣିଷ । ଘର କରିଥିଲେ ଛୁଆଙ୍କର ଅଳି ଅଝଟ ସହିବାକୁ ପଡ଼େ । ଛୋଟ ଛୁଆକୁ ମଣିଷ କରିବା କାମ ହେଲା ବାପ ମା'ଙ୍କର । ଘରେ ଅନ୍ୟ ମାନଙ୍କର ବ ସେଇଟା ହେଉଛି କାମ । ଧନୀ କହ, ଗରିବ କହ ଛୁଆକୁ ସମସ୍ତେ ଭଲ ପାଆନ୍ତି । ହେଲେ ଛୋଟ ଛୁଆର ମନ ବୁଝିପାରିଲେ ଅସୁବିଧା ହୁଏନି ।

ଛୋଟ ଛୁଆ ବାପ ମାଆ ଭଳି ହେବାକୁ ଚାହେଁ । ଦୁଇ ଚାରି ବରଷର ପିଲାଙ୍କ କଥାରୁ ଜାଣୁ ନଥିବୁ । ବଡ଼ମାନେ ଯାହା କରନ୍ତି, ଛୁଆ ନକଲ କରି ଶିଖେ । ଦୁଇ ବରଷରୁ ଛଅ ବରଷ ଯାଏ ପିଲାଏ କାମ ଶିଖନ୍ତି । ତୁ ଦେଖୁନୁ ରାଜା କେମିତି ଖଟ ଉପରୁ ପଡ଼ିଯିବାକୁ ଡରେ ? ସେଦିନ ଛୁରିରେ ରତନ ହାତ କଟିଗଲା । ସେ ସେଇ ଦିନଠୁ ଆଉ ଛୁରି ନାଆଁ ଧରୁଛି ? କିଆଁକୁ ବ ଛୁଆଙ୍କର ଡର ।

ହେଲେ ଆମ ମନରେ ଡର ଥାଏ ଛୁଆମାନଙ୍କ ପାଇଁ । ଆମେ ଭାବୁ ଯେ ଛୁଆ କଥା ଆମେ ଠିକ୍ ବୁଝି ପାରୁନୁ । ତା ଭାବିବା ଠିକ୍ ନୁହେଁ । ଛୁଆ ସବୁବେଳେ ଚାହେଁ ବାପ ମା'ଠାରୁ ଆଦର ପାଇବ । ହେଲେ ସେ ଚାହେଁନି ଆମେ ତା ପାଇଁ ବେଶୀ ବ୍ୟସ୍ତ ହେଉ । ବେଳେ ବେଳେ ରତନକୁ ମୁଁ ବଦମାସ ବୋଲି କହୁଚି—ତୁ ବି ରାଜାକୁ କହୁଚୁ । ଏମିତି କହିଲେ ଛୁଆ ମନରେ କଷ୍ଟ ହୁଏ । ଛୁଆଟା ନିଜକୁ ଦୋଷୀ ଭାବେ । ତା ନିଜ ଉପରେ ବିଶ୍ୱାସ ତୁଟି-ଯାଏ । ଆମେ ଛୋଟ ଛୁଆଙ୍କୁ ସେମିତି କରିବା ଠିକ୍ ନୁହେଁ ।



ଆମ ରତନଟା ଆଗରୁ କିଛି ଖାଉନଥିଲା । ତା ବୋଉର ବ୍ୟସ୍ତ କାହିଁରେ କ'ଣ ? ଯେତେତ ହେଲେ ମା' ମନଟା ପାଣି ଚକଟି । ରତନ ଅଡ଼ୁଟ ଲଗାଏ । ତା ବୋଉ ଯେତେ ଜିଦ କରି ଖୁଆଇଲା, ସେ ଖାଇଲାନି । ଜମାରୁ ପାଟିକୁ ନେଲାନି । ଥୁ-ଥୁ କରି ପକାଇଲା । ଏଭଳି ଛୁଆମାନଙ୍କୁ

"ବାପରେ", "ଧନରେ" କହିଲେ ଭଲ । ତା ମନ ତ ଟେହ୍ଲା କଥା ଶୁଣିବାକୁ ଖୋଜୁଥାଏ । ତା ଛଡ଼ା ଖାଇବା ଦରବ ଛୁଆଙ୍କ ପାଖରୁ ନେଇଗଲେ ଭଲ । ତାକୁ ବିରକ୍ତ କରି କି ଲାଭ ?

ଜଗା କହିଲା ହଁ ସତ କଥା ତ । ଆମ ରାଜାବାବୁ ପରା ସେଇ ଖୋଇ ଛାଡ଼ି ନାହାନ୍ତି । ଆଜିକାଲି ନୂଆ ଦରବ ଗୁଡ଼ି ଶିଖିଲେଣି । ଆଉ କଣ ଖାଇବା ଦରବ ସେଠେ ଖୁଣ୍ଟୁଚନ୍ତି ?

ରାଧାମୋହନ ବାବୁ କହିଲେ, ବେଶୀ ବେଶୀ ଖାଇବା ଦରବ ଛୁଆକୁ ବାଢ଼ିଦେବା ମନା । ତା ଭୋକ ବଢ଼ିବ କ'ଣ, ମରିଯାଏ । ସମୟ ଜଗି ତାକୁ ଖାଇବାକୁ ଦେବା କଥା । ତାହେଲେ ଯାଇ ଛୁଆର ମନ, ଦେହ ଠିକ୍ ରହିବ । ଛୁଆ-ମାନେ ରାଗିଥିଲେ ଖାଇବାକୁ ଦେବା ଠିକ୍ ନୁହେଁ । କାନ୍ଦୁ-ଥିଲେ ଖାଇବା ଦରବକୁ ସେ ଘୃଣା କରିବ । ଏକଥା ତମର ଜାଣିବା ଦରକାର । ଶ୍ରେଷ୍ଠ ଛୁଆଙ୍କୁ ଭୋକ ବେଳେ ବେଳେ ହୁଏନି । ରୋଗରୁ ଉଠିଥିଲେ ସେମିତ ଗୁଣ ବାହାରେ । ବାହାରେ ଚଲାବୁଲା ନ କରିପାରିଲେ ଭୋକ ହୁଏନି । ସେସବୁ ବୁଝିବା ନହାତ ଦରକାର ।

ଆହୁରି କେତେକଥା ଆମର ଜାଣିବାର ଅଛି । ବାପା ମା' ସାନ ଭଉଣୀକୁ ବେଶୀ ନଜର ଦେଲେ ଛୁଆ ଓଲଟା ଭାବେ । ବାପା ମା' ତାକୁ ଆଗଭଳି ଭଲ ପାଉ ନାହାନ୍ତି ବୋଲି ଭାବେ । ବାପ-ମା' କଳି କଜିଆ କଲେ ତା' ମନରେ ବ୍ୟସ୍ତ ହୁଏ । ଜଗା କହିଲା--"ଠିକ୍ କଥା । କମ୍ ଖାଉଥିବା ଛୁଆକୁ ଆଉ ଛୁଆଙ୍କ ସାଥିରେ ଖାଇବାକୁ ଦିଆଯାଏ । ପୋଷା ବିଲେଇକୁ ଡାକି ଖାଇବାକୁ ଦେଲେ ଛୁଆଟି ଖାଇବାକୁ ଚାହେ । ଏମିତି କେତେ କ'ଣ ?

ଦୁଇ ତିନି ବରଷର ଛୁଆ ଆଙ୍ଗୁଠି ଚୁଚୁମି ଥାଏ । ମା' ଦୁଧ ଖାଇବା ସୁଖ ସେ ସେଥିରୁ ପାଇଥାଏ । ବେଳେ ବେଳେ ୮।୧୦ ବରଷର ଛୁଆର ବି ଏଇ ଅଭ୍ୟାସ ଥାଏ । ବାପ-ମାଆ, ଆଙ୍ଗୁଠିରେ ରାଗ ବୋଳି ଦିଅନ୍ତି ବା ପିତା ଲଗାଇ ଦିଅନ୍ତି । ଗାଳିମନ୍ଦ ବି କରନ୍ତି । ଏପରି କଲେ ଛୁଆଟି ସହଜରେ ବଦଳି ଯାଏ ନାହିଁ । ଜଗା କହିଲା— "ଛୁଆମାନେ ନଖ ବି କାମୁଡ଼ନ୍ତି ।" ରାଧାମୋହନବାବୁ କହିଲେ—ଆମ ରତନକୁ ଦେଖୁନ ? ଏବେ ବି ନଖ କାମୁଡୁଛି । ସେ ଅଭ୍ୟାସ ସହଜରେ ଛାଡ଼ିପାରୁନି ।

ଶିଶୁ ବିଷୟରେ ଏମିତି କେତେ କଥା ଜାଣିବା ଦରକାର । ଖାଲି ଛୁଆକୁ ଜନମ ଦେଇଦେଲେ ଚଳିବନି । ତାର ଯାବତୀୟ ହାନିଲାଭ ଆମକୁ ଜଗିବାକୁ ପଡ଼ିବ । ନହେଲେ ଜୀବନରେ ସେ କେବେହେଲେ ବଦଳିବ ନାହିଁ । ଆମକୁ ସବୁବେଳେ ମନସ୍ତାପ କରିବାକୁ ପଡ଼ିବ । ହେଲେ ସମୟ ଆଉ ନଥିବ ସୁଧାରିବା ପାଇଁ । ନେଡ଼ିଗୁଡ଼ କହୁଣିକୁ ବୋହିଗଲେ କି ଲାଭ ? ଆମ ରତନର ଚେର ଅଭ୍ୟାସ ବଦଳି ଗଲାଣି । ତୁ ନଜର ରଖିନୁ ? ଜଗା କହିଲା—"ଏଇ ଆମ ରାଜାବାବୁଙ୍କ କଥା ବି ଦେଖୁନ ? ମାଆ ଆମର ଭାରି ବୁଦ୍ଧିଆର ସେଥିପାଇଁ । ମୁଁ ଟିକେ କଘା କଲେ ସବୁ ଜାଣି ପାରିବ ଯେ ।"

## ପିଲାଟିଏ କଣ ଚୁହେଁ

ସେଦିନ ରାଜା ଖେଳୁଥାଏ ବଗିଚା ଭିତରେ । ରତନ ଯାଇ ସେଠାରେ ପହଞ୍ଚିଲା । ଦୁହେଁ ମିଶି ଖେଳିଲେ । ପୁଣି

ସିଲଟ ଖଣ୍ଡେ ପାଇଁ ମାଡ଼ଗୋଳ ଲାଗିଲେ । ଜଗାର ମନ ତ ଲାଗିଚ । ସେ ଦଉଡ଼ି ଆସିଲା, ଦୁହିଁଙ୍କୁ ବୋଧ କରିବାକୁ ଯାଇ ବଡ଼ ଅଡ଼୍ୱୁଆରେ ପଡ଼ିଲା । ଭଙ୍ଗା ସିଲଟ ଖଣ୍ଡକ ଧରିଥାଏ ରତନ । ରାଜା ତାକୁ ଜମାରୁ ଛାଡ଼ୁନ । ଶେଷରେ ମାଷ୍ଟର ବାବୁ ଆସି ବୁଝାଇ ଦେଲେ । ରତନର ଜିତାପଟ ହେଲା । ଦୁ' ଫାଳ ସିଲଟ ଦୁହେଁ ଧରିଥାନ୍ତି । ରାଧାମୋହନ ବାବୁଙ୍କ ପାଖରେ ପହଞ୍ଚିଲା ଜଗା ।

ଦେଖିଲୁ ଜଗା । ଖାଲି ଆପଣା ବୟସର ସାଙ୍ଗସାଥି ଛୁଆଙ୍କର ଦରକାର ହୁଏନ । ବୟସ୍କ ଲୋକ ବି ଛାଏଁ ଛାଏଁ ସାଙ୍ଗ ବନିଯାନ୍ତି । ପିଲାଦିନୁ ଏଇ ଅଭ୍ୟାସ ଛୁଆଙ୍କର ରହିବା ଦରକାର । ମାଆ ଘର କାମ କଲାବେଳେ ଛୁଆ ପାଖେ ପାଖେ ଥାଏ । ଛୁଆ ମାଆର କାମ ଉପରେ ଥରେ ନଜର ଦିଏ । କେହି କେହି ଭାବନ୍ତି, ଛୁଆଙ୍କୁ ବେଶୀ ସମୟ ଏକୁଟିଆ ଛାଡ଼ିବା ଭଲ । ତାହା ହେଲେ ଛୁଆର ରୁଚି, ଚିନ୍ତା ଅଲଗା ହୁଏ । ହେଲେ ଏପରି କଲେ ଛୁଆଟି ବଡ଼ ଦିନେ ଲାଜକୁଳା ହୋଇଯାଏ । ଆଙ୍ଗୁଠି ଚୁଚୁମିବା ବି ଏହି କାରଣରୁ ହୁଏ ?

ଛୋଟ ପିଲା ପାଇଁ ପିଲାଙ୍କର ସାଙ୍ଗ ସୁଖ ଦରକାର । ବାପ-ମା'ଙ୍କର ଆଦର ଦରକାର । ବୟସ ଥିବା ଲୋକଙ୍କର ବି କିଛି ସାଙ୍ଗସୁଖ ଦରକାର । ସବୁରି ଗହଣରେ ଛୁଆ ଥାଇ ବି ବୁଲାବୁଲି କରେ । ବାପା-ମା'ଙ୍କର ନଜର ତା' ଉପରେ ରହିଲେ ହେଲା । ନୂଆ କଥା ଜାଣିବାକୁ ସେ ଚାହେଁ । ନୂଆ କାମ କରିବାକୁ ତାର ମନ । ତାକୁ ସେଥିରେ ସାହାଯ୍ୟ କରିବା ଆମର କାମ ।

ଶିଶୁ ହେଲା ଅଜ୍ଞାନ । ତା ବଅସ ବଢ଼ିଲେ ସେ ବଡ଼ମାନଙ୍କର କାମ ନକଲ କରେ । ଚାଲିଚଲଣ, ଢଙ୍ଗଢ଼ାଙ୍ଗ କଥାବାର୍ତ୍ତା କିଛି ବାଦ ଯାଏନା । ପାଠୁଆ ଲୋକ ପାଖରେ ଚଳୁଥିବା ଛୁଆର ଆଚରଣ ବି ଅଲଗା । ପରିବାର ହେଲା ଶିଶୁର ମୂଳଦୁଆ । ମାଆର ଯତନ ତା ପାଇଁ ମୋତି ମାଣିକଠୁ ବଳି, ଭାଇ, ଭଉଣୀ କଥା ଛାଡ଼ । ସେମାନେ ଛୁଆର ଯତନ ଅବା କଣ ନେବେ ? ଜଗା ମଥା ହଲାଇଲା ।





ଠିକ୍ ଦୁଇ ବରଷର ହୋଇଗଲେ ପିଲା ଢାଙ୍ଗରେ ଭାଇ ଭଉଣୀ ଆଚରଣ ଦେଖାଦିଏ । ଭାଇ ଭଉଣୀ କରୁଥିବା କାମ କରିବାକୁ ସେ ସୁଖପାଏ । ବେଳେ ବେଳେ ବଡ ଭାଇ, ଭଉଣୀ ଛୁଆ ଉପରେ ହିଂସା ଭାବ ଦେଖାନ୍ତି । ତୁ ଦେଖିନୁ, ଝୁଲୁନ କଥା । ରତନକୁ ଟିକିଏ ବେଶୀ ଗେଲ କଲେ ସେ କେମିତି ରାଗିଯାଏ । ତାକୁ ଲୁଚାଇ ଲୁଚାଇ ମାରଧର କରେ । ମାଆର କାମ ଏଇଠି ଢେର ବେଶୀ । ସେ ସାନ ଛୁଆକୁ ସାବଧାନରେ ରଖିବା କଥା । ବଡ଼ ଛୁଆକୁ ବୁଝାଇ ଦେବା

କଥା । ବେଳେ ବେଳେ ସାନ ଛୁଆଟି କାନ୍ଦିବାକୁ ଗୋଟିଏ ଆଳ କରିଥାଏ । ସେ ବାହାନା କରି କାନ୍ଦେ ।

କେତେକ ଘରେ ବୟସ ହୋଇଥିବା ବଡ଼ ଭଉଣୀ ଥାଆନ୍ତି । ସେମାନେ ଛୋଟ ଛୁଆଙ୍କୁ ବେଶୀ ଗେହ୍ଲା କରିବା କଥା ନୁହେଁ । ଘରେ ବୟସ ଥିବା ଲୋକମାନେ ଛୁଆ ଉପରେ ନଜର ଦେବା ଦରକାର । ନିଜ କାମ ସେ ନିଜେ କରି ଶିଖୁ । ଜାଣିଶୁଣି ବେଶୀ କାନ୍ଦିବା ଠିକ୍ ନୁହେଁ । ଜଗା କହିଲା, ହଁ, ସତ କଥା ତ । ବେଶୀ କାନ୍ଦିଲେ କି ବେଶୀ ଆଶା ପୂରଣ ହୋଇଯିବ ?

ରାଧାମୋହନ ବାବୁ କହିଲେ, ଛୋଟ ଛୁଆ ଏ ବଅସରେ କଥା କହି ଶିଖେ । ଦୁନିଆ ବିଷୟରେ କେତେ କଥା ଜାଣିବାକୁ ତାର ମନ । ସେ ସେତିକବେଳେ ବାପ ମା'ଙ୍କୁ ପଚାରେ । ବାପ ମାଆ କାମ କଲା ବେଳେ ଗପସପ କରିପାରନ୍ତି ନାହିଁ । ବଅସ ହୋଇଥିବା ଲୋକ ଛୁଆ ସହିତ ମିଶିବା ଖରାପ ବୋଲି ଲୋକ ଭାବନ୍ତି । ତା ସତ ନୁହେଁ । ତୁ ଦେଖୁନୁ ଆମ ରତନ କଥା, ରତନ ସବୁ ସୁ ରୁଖା ଲୋକ ସାଥିରେ ମିଶୁଚି । ହେଲେ ଭକ୍ତି ବା ଶ୍ରଦ୍ଧା ତା'ର ତ କମୁନି ।

ଛୁଆଟି ବାପା ମା'ଙ୍କୁ ଭଗବାନ ଭଳି ଭାବେ । ବାପା ମା' ତା ସାଥିରେ ମିଶିଲେ ତାର ସନ୍ଦେହ ତୁଟିଯାଏ । କେତେ କଥା ସେ ପଚାରେ । ଯାହା ସାଥିରେ ବେଶୀ ମିଶେ ତାକୁ ସେ କେତେ କଥା ପଚାରେ । ଉତ୍ତର ନ ପାଇଲେ ମନଟି ମରିଯାଏ । ଜଗା କହିଲା—"ରାଜାବାବୁ ପରା ମୋତେ କେତେ କଥା ପଚାରୁଥାନ୍ତି । ଅଥୟ କରି ଦେଉଛନ୍ତି ।" ହେଲେ ଛୁଆ

ମାନେ ସାଙ୍ଗସାଥି ପାଇଲେ ସବୁଠୁ ବେଶୀ ଖୁସି ହୁଅନ୍ତି । ବେଳେ ବେଳେ ବଡ଼ ପିଲା ସାଥିରେ ବି ଛୁଆମାନେ ମିଶନ୍ତି । ସେମାନଙ୍କ ପାଖରୁ କେତେ କଥା ଶିଖନ୍ତି ।

ରାଧାମୋହନବାବୁ କହିଲେ, "ତୁ ଠିକ୍ କହୁଛୁ । ବେଳେ ବେଳେ ସାନ ପିଲାଙ୍କ ସାଥିରେ ଖେଳେ । ତଥାପି ସବୁ ବଅସର ପିଲାଙ୍କ ସାଥିରେ ଛୁଆଙ୍କୁ ଛାଡ଼ିବା ଦରକାର । ତାହା ହେଲେ ଛୁଆଟି ସବୁବେଳେ କାମରେ ଲାଗି ପଡ଼ିବ । ଖେଳରେ ବି ବ୍ୟସ୍ତ ରହିବ । ଏସବୁ ଉପରେ ନଜର ଦେବା କାମ ହେଲା ଆମ ସମସ୍ତଙ୍କର । ବାପ, ମା' ଶିକ୍ଷକ ଆଉ ବୟସ୍କ ଥିବା ଲୋକ ଦାୟୀ ।

ଜଗା ମନ ଖୁସିରେ ଭରି ଉଠିଲା । ଦେଖିଲା ରାଜା-ବାବୁ ତା କାନ୍ଧରେ ଘୁମାଇ ପଡ଼ିଲେଣି । ସେ କହିଲା ମୁଁ ଆସୁଚି ବାବୁ । ତେଣେ ମା ଖୋଜୁଥିବେ ।

## ପିଲାମାନଙ୍କର ଖେଳ

ସେଦିନ ରାଧାମୋହନ ବାବୁ ନାତିକୁ ଧରି ବୁଲୁଥାନ୍ତି ବାଗରେ । ଗଛ ଲଗାଇବା ହେଲା ତାଙ୍କର ଅସଲ ସଉକ । ନାତି ରତନ ଧରି ଚଗଲା । ଲଙ୍କା, ବାଇଗଣ ଗଛରୁ ଗଛକୁ ଛିଡ଼ାଇ ପକାଉଥାଏ । ଦାଆ, ମଞ୍ଜି ଧରି ଖେଳିବାକୁ ଲାଗିଲା । ରାଧାମୋହନ ବାବୁଙ୍କର ମଞ୍ଜି ଲଗାଇବା ହେଲା ନାହିଁ । ହସି ହସି ସେ ନାତିକୁ ଗେଲ କରୁଥାନ୍ତି । ଜଗା ଆସି ପହଞ୍ଚିଲା ଏତିକିବେଳେ । ରାଜା ବି ଥାଏ ସାଥିରେ ।

—"ଆମ ରାଜାବାବୁ ତ ମଞ୍ଜି ଲଗାଇଲେଣି ।" ହସି ହସି କହିଲା ଜଗା । ରାଧାମୋହନ ବାବୁ କହିଲେ—ଦେଖିଲୁ ତ । ଛୋଟ ଛୁଆମାନେ ଖେଳନା, ବାଡ଼ି, ପାଇଲେ ଖେଳନ୍ତି ।

ରଙ୍ଗବେରଙ୍ଗ ଖେଳନା ଚପି ଶବଦ ବାହାରନ୍ତୁ ।" ରାଜା ବାବୁ ଖଣ୍ଡେ ଧରି ମାଟିରେ ପୋତୁଥାଏ । ସବୁ ଜିନିଷର ରଙ୍ଗ, ଆକାର ସୁଆଦ ବାରିବାଛିବା ପିଲାମାନଙ୍କର ଗୁଣ । ବଡ଼ ହେଲେ ଛୁଆଟି ଖେଳରୁ କେତେ କଥା ଶିଖିଥାଏ ।



ଛୋଟ ଛୁଆ କଥା କହି ଶିଖିଥାଏ । ଜାତି ଜାତିକା ଦରବର ନାଆଁ ଜାଣିବାକୁ ଚେଷ୍ଟା କରେ । ଏଥିପାଇଁ ସେ ଥରକୁ ଥର ପ୍ରଶ୍ନ ପଚାରେ । ସେତେବେଳେ ତା ଉପରେ ବିରକ୍ତ ହେବା ଠିକ୍ ନୁହେଁ । ତା ମନରେ କଷ୍ଟ ହେବ । ତା ମନ ଭାଙ୍ଗିଯିବ—ସରାଗ କମିଯିବ । ଜଗା କହିଲା, ଠିକ୍ କଥା ବାବୁ । ମୁଁ ରାଜା ବାବୁଙ୍କ ଉପରେ ବିରକ୍ତ ହେଲେ ସେ ରୁଷନ୍ତି ।

ଛୁଆମାନଙ୍କୁ ଖୁସି କରିବାକୁ ଛବି, କଣ୍ଢେଇ, ଖେଳନା ଦରକାର । ବେଳେ ବେଳେ ଗାଡ଼ି, ମଟର, ଉଡ଼ାଜାହାଜ ଛବି ଦେଖି ଛୁଆମାନେ ଭୁଲିଯାଆନ୍ତି । ଆମେ ବଡ଼ ମଣିଷମାନେ ବୁଝାଇ ଦେବା ଦରକାର । ବଡ଼ ହେଲେ ପାଠ ପଢ଼ିଲେ ଛୁଆଟି ସବୁ ଜାଣିବ ।

ଜଗା କହିଲା—"କାଚ ଗିଲାସ, ବୋତଲ, ଫଟୋକୁ ଭାଙ୍ଗିବାକୁ ଏପଟ ସେପଟ କରନ୍ତି । ପନିକି, ଛୁରୀରେ କାଟିବାକୁ ସୁଖ ପାଆନ୍ତି ।" ଛୋଟ ଛୁଆମାନେ ଏମିତି ତାହା ହେଲେ ମଜା ପାଆନ୍ତି । ରାଧାମୋହନ ବାବୁ କହିଲେ "ଛୁଆଙ୍କୁ ତା କାମରେ ସାହାଯ୍ୟ କରିବା ଦରକାର । ଛୁଆ



ମାନେ କେତେଇ ବାହାଘର, ରନ୍ଧାବଢ଼ା, ବିକାକିଣା କରନ୍ତି । ଏଥିରୁ ସେମାନେ ଖୁବ୍ ଆନନ୍ଦ ପାଆନ୍ତି । ଏଇସବୁ ଖେଳରୁ ପିଲା ନିଜକୁ ବଡ଼ ମଣିଷ ବୋଲି ଭାବେ । ପିଲା-ମାନଙ୍କର ଯାହା ଖେଳନା ଦରକାର ସବୁ ଆମେ ଯୋଗାଇବା କଥା ।

ତା'ପରେ ଆଉ ଗୋଟିଏ କଥା ଜାଣିବା ନିହାତି ଦରକାର । ବଡ଼ମାନଙ୍କର କାମ ହେଲା ଛୁଆର ଭଲମନ୍ଦ ବୁଝିବା । ଛୁଆ ଖୋଲା ପବନ ପାଇବା ଦରକାର । ଖେଳାବୁଲା କଲାବେଳେ ତା ଦେହରେ ଯେମିତି ଆଘାତ ନଲାଗେ । ଖେଳୁ ଖେଳୁ ଛୁଆ ଯେମିତି ଦରକାରୀ ଜିନିଷ ଭାଙ୍ଗି ନ ଦିଏ ।

ପିଲାଙ୍କୁ ଏ ବିଷୟରେ ଚେତେଇ ଦେବା ହେଲା ବଡ଼ମାନଙ୍କର କାମ । ଜଗା କହିଲା—"ସେଦିନ ରାଜାବାବୁ କାଚ ଗିଲାସ ଧରିଥିଲେ । ମାଆ ତାଙ୍କୁ ବୁଝାଇ ଦେଲେ । ସେଇଠୁ ସେ ଗିଲାସକୁ ବଡ଼ କାଇଦାରେ ରଖିଦେଲେ ପରା ।"

ରାଧାମୋହନ ବାବୁ କହିଲେ, 'ସବୁ ପିଲା ଏମିତ ଗୁଣ ଶିଖିଯାଆନ୍ତି । କାହା ସାହାଯ୍ୟ ନପାଇ ପିଲାମାନେ ମନକୁ ମନ ଖେଳନ୍ତି । ଦେହ, ମନ ଟାଣ ହୁଏ । ବେଳେ ବେଳେ ପିଲାଙ୍କୁ ଛୋଟିଆ କଥା ଆମେ କହୁ । ସେ ଦୁନିଆର ବଡ଼ ବଡ଼ କଥା ଭାବି ପକାଏ । କାଗଜ ଡଙ୍ଗା ଆଉ ସମୁଦ୍ରରେ ଜାହାଜ ଚାଲିବା କଥା ଭାବି ପାରନ୍ତି । ଛୋଟିଆ ପିଲାଙ୍କର ମଥା ଛୋଟ । ବୁଝିବା ଶକ୍ତି କମ । ତାକୁ ଛୋଟିଆ କଥା ଗପ ଭଳି କହିଲେ ଭଲ ।



ଜଗା କହିଲା—"ରାଜାବାବୁ କାଗଜ ଡଙ୍ଗା ଭସାନ୍ତି । ବେଳେ ବେଳେ ଜାହାଜ ଛବି ଦେଖିଲେ ମାଆଙ୍କୁ

ପଚାରନ୍ତି । ଜାହାଜ କେମିତି ଚାଲେ ? ସମୁଦ୍ରରେ ତ ଢେର ପାଣି । ଜାହାଜ ବୁଡ଼ିଯାଏ ନା ଭାସିଯାଏ ? ଏମିତି କେତେ କଥା ପଚାରନ୍ତି ।”

ଏତକବେଳେ ରାଜା ଆଉ ରତନ ତେଲୁଣି ପୋକଟିଏ ଦେଖି ଡରିଗଲେ । ରାଜା “ସାପ ସାପ” କହି ଦଉଡ଼ିଆଁରେ ଆସି ହାଜର । ରତନ ତେଲୁଗୁଣି ପୋକଟାକୁ କାଠିରେ ଗୁଞ୍ଜୁଥାଏ । ରାଧାମୋହନବାବୁ କହିଲେ, ‘ଦେଖିଲୁ ଜଗା— ଆମେ ଟିକିଏ ନଜର ରଖିଲୁନି ବୋଲି ପିଲା ଦିଟା ଡରିଗଲେ । ତେଲୁଗୁଣି ପୋକଟି ମରିଗଲା । ଦୁହିଁଙ୍କର ଖୁସି ଦେଖେ କିଏ ? ରତନ ତାଳିମାରି ଜେଜେଙ୍କ ପିଠିରେ ଲାଉ ଭଳି ବସିଲା ।

ଜଗା କହିଲା, “ମୁଁ ଢେର କଥା ତୁମ ପାଖରୁ ଶିଖିଲିଣି ବାବୁ । ଏଥର ରାଜା ବାବୁଙ୍କୁ ନଜର ଦେବାକୁ ହେବ ?” ରାଧାମୋହନ ବାବୁ କହିଲେ, “ପିଲାମାନଙ୍କୁ ଯେମିତି ଭାବରେ ଚଳେଇବା, ସେମିତି ସେମାନେ ହେବେ । ଛୁଆ-ମାନେ ଶାସନ ଭିତରେ ରହିବାଟା ଠିକ୍ ନୁହେଁ । ବଡ଼ ହେଲେ କଠିନ ପ୍ରକୃତିର ହୋଇ ଯାଆନ୍ତି । ତାଙ୍କୁ ବୁଲାବୁଲି ପାଇଁ ଛାଡ଼ିଦେବା ଭଲ । ହେଲେ ସାମାନ୍ୟ ନଜର ଦରକାର ।

ସାମାନ୍ୟ ନଜର ନ ପାଇଲେ ପିଲାଏ ଢ଼ିଲା ହୋଇ-ଯାଆନ୍ତି । ପରେ ବାପା ମା'ଙ୍କର ଆକଟ କିଛି କାମ ଦିଏ ନାହିଁ । ସବୁ କଥା ଛୁଆମାନଙ୍କୁ ବୁଝାଇ କହିବା ଭଲ । ଜଗା ମଥା ପୁରାଇ ହଁ ଭରିଲା । ରାଜା ତାକୁ ଭିଡ଼ିଲା ଘରକୁ ଯିବା ପାଇଁ । ରାଧାମୋହନ ବାବୁ ଉଠିଲେ । ଆରେ ସତେତ କେତେବେଳ ହେଲାଣି ।

# ପିଲା କାହାକୁ ଡରେ

ସେଦିନ ରାଜା ଆଉ ରତନ ସାଙ୍ଗ ହୋଇ ଖେଳୁଥାନ୍ତି । ରାଜା ଗୋଟିଏ ଗୁଡ଼ି ଧରିଥାଏ । ରତନ ତା ହାତରୁ ଟାଣିନେଇ ଉଡ଼ାଇବାକୁ ବସିଲା ହେଲେ ପାରିଲାନି । ରାଜା ଗୁଡ଼ି ପାଇଁ ରାହା ଧରି କାନ୍ଦିଲା । ହେଲେ ରତନ ବା ଗୁଡ଼ି ଛୁଇଁ କେଉଁଠି ? ରତନ ଧାଇଁଲା ଆଗେ ଆଗେ । ରାଜା ବାଡ଼ିଧରି ତା ପଛେ ପଛେ ଗୋଡ଼ାଇଲା । ରାଗରେ ପାଚି ଯାଇଥାଏ । ନା— ରତନକୁ ଯେମିତି ହେଉ ବାଡ଼େଇବ । ବାଡ଼ିଟି ତା ହାତରୁ ଛଡ଼ାଇ ନେଲା ଜଗା—ଆଉ ତା ରାଗ ଦେଖେ କିଏ । ଅଥୟ ହୋଇଗଲାଣି । ରାଧାମୋହନ ବାବୁ ରତନକୁ ଦେଖି ଜାଣି ପାରିଲେ ।

ନା—ଏ ପିଲା ଦୁହିଁଙ୍କର ଆଜି କିଛି ହୋଇଛି । ଜଗା ବଳ ଅବା କେତେ । ଜଗା ଯାଇ ହାକରି । ରାଧାମୋହନବାବୁ ଆଗେ ରାଜାକୁ କୋଳକୁ ନେଇ ଗଲେ । ତା ଲୁହ ପୋଛି ବୁଝାଇ ଦେଲେ । ଚଷମାଟା ବି ଲଗେଇ ଦେଲେ ତା ଆଖିରେ । ରାଜାର ରାଗ କମି ଆସୁଥାଏ । ପକେଟରୁ କଲମଟି କାଢ଼ି ତା ହାତରେ ଧରାଇ ଦେଲେ ରାଧାମୋହନ ବାବୁ । ଘଣ୍ଟାଟା ଏଥର ଜଣା ପଡ଼ିଲା । ରତନକୁ ଡାକିଲେ । ରତନ ତେଣେ ଡରିଯାଇ ମାଆଙ୍କ ପାଖରେ ଲୁଚିଥାଏ । ସବୁ କଥା ପକ୍କା କରିଦେଇ ଡାକିଲେ ଜଗାକୁ । ରାଜାର ରାଗ ଥମିଗଲା । ରାଜା ଆଉ ରତନ ପୁଣି ଏକାଠି ଖେଳିଲେ ।

ଜଗା କହିଲା, ନାଇଁ ଆଜ୍ଞା ମୋଦେଇ ହେଉନି । ମୁଁ ଜାଣି ନଥିଲି ରାଜା ବାବୁଙ୍କର ଗୁଡ଼ିଟା ରତନ ବାବୁ ଆଣିଚନ୍ତି ବୋଲି । ମୁଁ ବାଡ଼ିଟି ତାଙ୍କ ହାତରୁ ଛଡ଼ାଇ ନେଲି ବୋଲି

ଏତକ ଘଟିଲା । ରାଧାମୋହନ ବାବୁ ଗୋଟି ଗୋଟି କରି ସବୁ ବୁଝାଇଲେ । --"ହସ କାନ୍ଦ, ରାଗ-ରୁଷା, ହିଂସାବାଦ ସବୁ ଆମରି ଭିତରେ ଅଛିରେ ! ଜରା ଡର ଭୟ ବି ଆମରି ଭିତରେ ବସା ବାନ୍ଧିଛି ପରା । କିଏ ରାଗିଯାଇ କାହାକୁ ମାରି ଦେଉଛି । ପୁଣି କିଏ ରାଗକୁ ଚାପି ରଖି ବାଟ ଖୋଜୁଛି । ସ୍ନେହ ଆଦରରେ ମାଆ ଛୁଆକୁ ଅଥୟ କରି ଦେଉଛି । ପୁଣି କାହା ପାଖରେ ଆଦର ଟିକ ବି ମିଳୁନି । କିଏ କାନ୍ଦି କାନ୍ଦି ଦୁଃଖରେ ପାଗଳ ହୋଇଗଲାଣି ତ, ପୁଣି କିଏ ମୂକ ପାଲଟି ଯାଉଛି ।

ଏମିତି କେତେ କ'ଣ ଘଟୁଛି ଏ ଦୁନିଆରେ । ପିଲାର ହସ-କାନ୍ଦ, ମାନ ଅଭିମାନ, ରାଗ-ରୁଷା ଆମରି ବିଚାରି କରିବା କଥା । ଜନ୍ମ ହେଲାପରେ ଛୁଆଟି ହାତଗୋଡ଼ ହଲାଏ, କାନ୍ଦେ । ଆରାମ ଲାଗିଲେ ଶୋଇ ପଡ଼େ । ବେଶୀ ସମୟ ଶୋଇ ରହେ । କେତେବେଳେ ଖେଳେ ପୁଣି କେତେବେଳେ କାନ୍ଦେ । ଏମିତି କିଛି ଦିନ ଗଡ଼ିଯାଏ । ଦୁଇ ବର୍ଷ ପୁରିଲେ ବେଳେ ତା ମନରେ ହିଂସା ଭାବ ଆସେ । ବାପ ମା' ପାଇଁ ସ୍ନେହ, ଆଦର ବି ସେ ଦେଖାଏ । ପିଲାମାନଙ୍କ ସାଥିରେ ମିଶିଲେ ତା ମନରେ ସ୍ନେହ ବଢ଼େ । ପୁଣି ହିଂସା, ବାଦ ବି ବଢ଼େ ।

ଆସ୍ତେ ଆସ୍ତେ ପିଲା ବଢ଼େ । ଭୂତ କଥା ବି ଶୁଣେ । ଗାଆଁ ମଶାଣି, ଓସ୍ତ ଗଛ କଥା ପିଲା ଶୁଣେ । ବେଳେ ବେଳେ ଅନ୍ଧାର ଘର ଦେଖି ଛୁଆ ଡରେ । ଉଚ୍ଚ ଯାଗା ଦେଖିଲେ ଡରେ । ଜରା କହିଲା, "ଛାତ ଉପରେ ଠିଆ ହୋଇ ତଳକୁ ଚାହିଁଲେ ରାଜାବାବୁ ପରା ଡରିଯାନ୍ତି । କିଛି

ଗୋଟାଏ ବଡ ଶବଦ ଶୁଣି ପିଲାଏ ଡରନ୍ତି—ଏକଥା କ'ଣ ମୁଁ ଜାଣିନି । ଆମ ରାଜାବାବୁ ଖରାପ ସପନ ଦେଖି ବ ଡରନ୍ତି ।

ରାଧାମୋହନ ବାବୁ କହିଲେ, "ଏଇ ଦେଖନ୍ତୁ ଆମ କୁକୁରକୁ ଦେଖି ରତନ କେମିତି ଡରେ ? ସାପକୁ ଦେଖିଲେ ପିଲାଏ ଡରନ୍ତି । ଆସ୍ତେ ଆସ୍ତେ ପିଲାଏ ନିଆଁ, ରୋଗ, ମରଣକୁ ଡରିବା ଆରମ୍ଭ କରନ୍ତି । ରାସ୍ତାରେ ପଡ଼ିଗଲେ କି ଗାଡ଼ି କାହା ଉପରେ ଚଢ଼ିଗଲେ ଛୁଆଙ୍କର କାନ୍ଦ ଦେଖିବ କ'ଣ ?"

ଜଗା କହିଲା, "ପୁଣି ଅଚିହ୍ନା ଲୋକ ଦେଖିଲେ ପିଲାଏ ଡରନ୍ତି । ବେଶ ବଦଳେଇ ଡରାଇଲେ ବି ପିଲାଏ ଡରନ୍ତି । ଆମ ରତନବାବୁ ପାଠକୁ ବ ଡରୁଚନ୍ତି' । ପାଠପଢ଼ା ଯଦି ପୁରୁଣାକାଳିଆ ଢଙ୍ଗରେ ହେଲା, ପିଲାଏ ମନ ଦିଅନ୍ତି ନାହିଁ ।"

ରାଧାମୋହନ ବାବୁ କହିଲେ, "ହାଲିଆ ହୋଇଗଲେ ବି ପିଲାଏ ଭୟ ପାଇଯାନ୍ତି । ଡ୍ରେକ କଲେ କି ଏକୁଟିଆ ଥିଲେ ପିଲାଏ ଡରିଯାନ୍ତି । ଘର ଭିତରେ ବଡ଼ ମଣିଷ ମୂଷା, ଅସରପାକୁ ଡରିଲେ, ପିଲାଟି ଡରେ । ତିନି ବର୍ଷରୁ ଛୋଟ ପିଲା ଡରିଗଲେ କାନ୍ଦେ, ମୁହଁ ବି ଲୁଚାଏ । ଆଉ ଝିଅମାନେ ତ' ପୁଅମାନଙ୍କ ଠାରୁ ବେଶୀ ଡରନ୍ତି । ବୟସ ବଢ଼ିଲେ ପିଲାଏ କେତେ କଥା ଦେଖନ୍ତି, ଭାବନ୍ତି । ଘର ଭିତରେ କିଏ ମରିଗଲେ କି ପାଣିରେ କିଏ ବୁଡ଼ିଗଲେ ପିଲାଟି ଭୟ ପାଇ-ଥାଏ । ଥଟ୍ଟା ମଜା କଥାରେ ବି ପିଲା ବେଶୀ ଡରେ । ହେଲେ ତୁ ଜାଣିନୁ ଜଗା, ବୁଦ୍ଧିଆ ଛୁଆ ସବୁ କଥାରେ ଜଗି ରହିଲେ ।

ନିଆଁକୁ ପିଲାମାନେ ଡରନ୍ତି । ଗୋଟିଏ ପିଲା ଯଦି ଡରୁଥାଏ, ତାକୁ ନ ଡରୁଥିବା ପିଲା ପାଖରେ ଛାଡ଼ିଲେ ତା

ଡର କମିଯାଏ । ଆମ ଗୁଜା ଆଉ ରତନ କଥା ଦେଖନ୍ତୁ । ଗୁଜାଟା ଟିକେ ବେଶୀ ଡରକୁଳା ଥିଲା—ସେ କେମିତ ଆସ୍ତେ ଆସ୍ତେ ସାହସୀ ହୋଇଗଲାଣି । ବେଳେ ବେଳେ ଆମେ ଛୁଆମାନଙ୍କୁ କେତେ ଜିନଷରେ ହାତ ଦେବାକୁ ମନାକରୁ । ତାହା ହେଲେ ଛୁଆମାନଙ୍କର ଡର ବଢ଼ିଯାଏ । ଯେଉଁ ପିଲା ବେଶୀ ଡରେ, ତା ମନ ସେତେ ଦୁର୍ବଳ । ତା ଦେହ ବ ଦୁର୍ବଳ ହୋଇଥାଏ ।

ବଡ଼ମାନେ ଛୁଆମାନଙ୍କୁ ସାହସ ଦେବା କଥା । ମନ ଖୁସି କରିବା ଦରକାର । ପିଲା ମନରୁ ଡର କମିଗଲେ ସେ ଫୁର୍ତ୍ତି ଦେଖାଏ । ତା ଦେହ ବ ଭଲ ରହେ । ଆମ ରାଜା ଆଉ ରତନ ଟିକେ ଡର ଛାଡ଼ିଲେଣି । ଜଗା ହସି ଦେଇ କହିଲା, ମୁଁ ଆସୁଛି ବାବୁ । ତେଣେ ବାବୁଙ୍କର ଖାଇବା ବେଳ ହେଲାଣି ।

## ପିଲା ଶିଖେ ଆମର କଥା

ସେଦିନ ରତନ ରାଗିଥାଏ ଜେଜେଙ୍କ ଉପରେ । କଥା ଜମାରୁ ମାନିଲାନି । ବୋଉ ବୁଝାଇଲେ । ତଥାପି ଫଳ ହେଲାନି । ରାଧାମୋହନବାବୁ ଦେଖିଲେ ସତକୁସତ ପିଲାଟା ରାଗି ଯାଇଚି । ତିନି ବରଷ ପରେ ପୁଅମାନଙ୍କର ରାଗ ଝିଅମାନଙ୍କଠାରୁ ଟିକେ ବେଶୀ ଥାଏ । ପିଲାଏ ବଡ଼ ହଇରାଣ କରନ୍ତି । ରାଧାମୋହନ ବାବୁ ଧୀରେ ଧୀରେ ରତନକୁ ମଜା କଥାଟିଏ କହି ବାଟକୁ ଆଣିଲେ । ରତନ ବାଟକୁ ଆସିଯାଇଥାଏ, ଫେଁ କିନା ହସି ଦେଲା । ରାଧାମୋହନବାବୁ ଦେଖିଲେ ଔଷଧଟା ଠିକ୍ କାମ ଦେଖାଇଛି ।

ଏତିକିବେଳେ ଜଗା ମାଛ ଧରି ଆସିଲା । ମାଷ୍ଟର ବାବୁ ମାଛ ପଠାଇଥାନ୍ତି । ରତନ ମାଛ ଦେଖି ଭୋଳ ହୋଇ ଗଲା । ରାଧାମୋହନବାବୁ କହିଲେ—"ଆଜି ରତନ ଖୁବ୍



ରାଗିଯାଇଥିଲା । ତାକୁ ଭୁଲାଇ ଦେଇଛୁ, ତୁ ବି ରାଜାଙ୍କୁ ମଜା କଥା କହି ଭୁଲାଇ ଦେବୁ । ଏ ବଅସରେ ପିଲାମାନେ ଟିକେ ବେଶି ହଇରାଣ କରନ୍ତି । ଟିକେ ନ ଜଗିଲେ ପିଲାଏ ଠିକ୍ ବାଟକୁ ଆସି ପାରନ୍ତି ନାହିଁ । ଆଉ ଟିକେ ବଡ଼ ହେଲେ ରାଗିଯାଇ ପିଲାମାନେ କଳକଳିଆ କରନ୍ତି । ୭।୮ ବର୍ଷରୁ ୧୦ ବର୍ଷ ଯାଏ ଏଇଟା ବଢ଼େ ।" ଏଇ କଳକଳିଆ ବେଳେ ଭେଣ୍ଟିଆ ନାରଦ ମୁନି ବି ଥାଆନ୍ତି । ଜଗା ବହେ ହସିଲା । ଚଉଦ ପନ୍ଦର ବର୍ଷ ପରେ ରାଗ କମିଯାଏ ।

[illegible] ଅବସ୍ଥା ନେଇ ପିଲାଏ କମ୍ ବେଶୀ ରାଗ [illegible] ଉପରେ ବଡ଼ମାନେ ଯେମିତି ବ୍ୟବହାର

ଦେଖାନ୍ତି, ପିଲା ସେଇ ଅନୁସାରେ ରାଗେ । ଦୁର୍ବଳିଆ ପିଲା ବେଶୀ ରାଗେ । ଚିଡ଼ଚିଡ଼ିଆ ହୋଇଯାଏ । ପିଲା ଆଗରେ ବେଶୀ ରାଗିଲେ ଭଲ ନୁହେଁ । ଖରାପ ପ୍ରଭାବ ତା ଉପରେ ପଡ଼େ । ରାଗରୁ ହିଂସା ଜନ୍ମ ହୁଏ । ପିଲା ପାଇଁ ପାତର ଅନ୍ତର ଦେଖାଇଲେ ହିଂସା ବାଦ ସେ ଦେଖାଏ ।

ତୁ ତ ଜାଣୁ ଆମ ରତନ କଥା । ରତନ ଜନ୍ମ ହେବା ଆଗରୁ ଝିଅଟି କେମିତି ହିଂସା କରୁଥିଲା । ହିଂସାବାଦ, ସାଙ୍ଗସାଥି, ଭାଇ ଭଉଣୀଙ୍କ ଭିତରେ ଚାଲେ ।

ହିଂସାବାଦ ଛୁଆମାନଙ୍କ ମନରେ ଆସିଲେ ଖରାପ । କାହାକୁ ବାଡ଼େଇ ଦିଅନ୍ତି ତ ବିଛଣାରେ ମୁତି ଦିଅନ୍ତି । ବେଳେ ବେଳେ କାହାକୁ ଗୋଟିପଣେ ନିଜର କରିବାକୁ ବସନ୍ତି । ଦେହ ଖରାପ ବୋଲି ବାହାନା ଦେଖାନ୍ତି । ବେଳେ ବେଳେ ନ ଖାଇ ଉପାସ ରହନ୍ତି, ଏମିତି କେତେ କ'ଣ ।

ଜଗା କହିଲା—"ପିଲାଏ ତ ପୁଣି ଜିନିଷପତ୍ର ଭଙ୍ଗାଭଙ୍ଗି କରନ୍ତି । ଗୋଳମାଳ କରି ଚିରାଚିରି କରନ୍ତି । ପିଲାଏ ବେଳେ ବେଳେ ବଳ ଦେଖାନ୍ତି । ବାହାଦୁରୀ ଦେଖାନ୍ତି । ସମସ୍ତେ ପ୍ରଶଂସା କରିବାକୁ ଚାହିଁ ରହନ୍ତି ।" ରାଧାମୋହନ ବାବୁ କହିଲେ, 'ନାଚ, ଗୀତ, ବାଜା ଛୁଆଙ୍କ ମନ ଭୁଲାଇ ଦିଏ । କୋଳରେ ହେଉ ବା ଆସ୍ତେ ହେଉ ପିଲାଏ ହସ ଦେଇ ଖୁସି ପାଆନ୍ତି । ବେଳେ ବେଳେ ଆଉଁସି ଦେଇ ଚୁମା ଦେଇ ପିଲାଏ ମନକଥା ପ୍ରକାଶ କରି ଦିଅନ୍ତି ।

ପିଲାମାନେ ଜଣେ ଦିଜଣ ଭିତରେ ସ୍ନେହ ଦେଖାନ୍ତି ନାହିଁ । ଢେର ସାଙ୍ଗ ଭିତରେ ସ୍ନେହ ଆଦର ଦେଖାଯାଏ । ପିଲାଏ ପୁଣି ଦୟା, ସହାନୁଭୂତି, ଦୁଃଖ ପ୍ରକଟ ଭାବ

ଦେଖାନ୍ତି । ଘରର ପ୍ରଥମ ପିଲା ବେଶୀ ଆଦର ଯତ୍ନ ପାଇଥାଏ । ସେଇ କାରଣରୁ ସେ ବେଶୀ ଅଝଟିଆ, ଅଭିମାନୀଆ ହୁଏ । ଜଗା କହିଲା—"ଏଇ ରାଜାବାବୁ କଥାରୁ କ'ଣ ମୁଁ ଜାଣି ପାରୁନି ? ରାଜାବାବୁ ପରା ଟିକିଏ କଥାରେ କାନ୍ଦୁଛନ୍ତି । ଗୋଳମାଳ କରୁଛନ୍ତି । ତାଙ୍କର ଅଳି ଅଝଟ ତ ଛାଏଁ ଛାଏଁ ପୂରଣ ହୋଇଯାଉଛି । ସେଇଥିପାଇଁ ପରା ରାଜାବାବୁ କେତେ ଫିକର କରୁଛନ୍ତି ।"

ରାଧାମୋହନ ବାବୁ ହସିଲେ । କହିଲେ, ପିଲା ମନରୁ ରାଗ ଭୟ ଦୂର କରିବା ଦରକାର । ତା ମନରେ ଅଯଥା ଚିନ୍ତା ପୁରାଇବା ଠିକ୍ ନୁହେଁ । ହେଲେ ଛୁଆର ଉତ୍ତେଜନା ବଡ଼ ମଣିଷଠାରୁ ଅଲଗା । ପିଲାଏ ରାଗରୁଷା କରି କାନ୍ଦିଲେଣି । ପୁଣି ଆର ଘଡ଼ିକେ ବାଡ଼ିଆପିଟା ଲାଗିଲେଣି । ତା'ପରେ ଦେଖ ପିଲାଟି ହସି ହସି ଗଡ଼ିଯାଉଛି । ଏସବୁ ଘଟଣା କ୍ଷଣସ୍ଥାୟୀ । ଆଉ ବେଶୀ ସମୟ ଧରି ରହେ ନାହିଁ ।

ପିଲା ଉପରେ ବାପ ମା'ଙ୍କର ପ୍ରଭାବ ପଡ଼େ । ବାପ ମା' ରାଗରୁଷା କଲେ କି କଳିଗୋଳ କଲେ ପିଲା ଉପରେ ପଡ଼େ । ସେ ବି ଠିକ୍ ବାପା ମା' ଭଳି ବ୍ୟବହାର ଦେଖାଏ । ବାପ ମା'ଙ୍କର ବ୍ୟବହାର ଠିକ୍ ଥିଲେ ପିଲାଏ ବେଶୀ ସେ ଭଳି ହୁଅନ୍ତି ନାହିଁ ।

ଜଗା କହିଲା, "ଠିକ୍ କଥା । ହେଲେ ଆମେ ଏସବୁ ଜାଣି କାମ କରିବା ଦରକାର । ବେଳେ ବେଳେ ମୁଁ ବୁଝି ପାରୁନି, ସାନବାବୁ କ'ଣ ପାଇଁ ବାଉଳା ହୁଅନ୍ତି ? ମୋତେ ବଡ଼ ଅଡୁଆ ଲାଗେ । ମାଆ ଠିକ୍ ବୁଝି ପାରନ୍ତି । କଅଁଳେଇ ବୁଝାଇ ଦେଲେ ସବୁ ଠିକ୍ ହୋଇଯାଏ ।"

ରାଧାମୋହନବାବୁ କହିଲେ, ପିଲା ହେଲା ଦେଶର କାଲି । ଆଜି ଆମେ ଯାହାକୁ ଛୁଆ ଦେଖୁ, କାଲି ସେ ଗୋଟିଏ ବଡ଼ ମଣିଷ । ବେଳେ ବେଳେ ଛୁଆଙ୍କ ମନକଥା ବୁଝି ନପାରି ଆମେ ଚିଡ଼ିଯାଉ । ସେପରି କରିବାଟା ଜମାରୁ ଠିକ୍ ହେବନି । ପିଲାକୁ ବେଶୀ ଆଖି ଦେଖାଇଲେ କି ମାରଧର କଲେ ସେ ଡରିଯାଏ । ତା ମନର ଭାବ ଫୁଟି ପାରେନି । ଆମ ସମାଜ ଭିତରେ ଚଳିଲାବେଳେ ସେ ଅଲଗା ଭାବ ଦେଖାଏ । ନିଜକୁ ଶ୍ରେଷ୍ଠ ଭାବେ । ତାଦେଇ କିଛି କାମ ହେବନି ବୋଲି ସେ ଭାବେ । ହେଲେ ଭଗବାନ ଏମିତି ବଳ ଦେଇଛନ୍ତି ତାକୁ ସେସବୁ ଗୁଣ ଫୁଟାଇ ପାରେ । ବେଳକାଳ ଜାଣି ତାକୁ ସବୁ କଥା ଶିଖାଇଲେ ହେଲା ।

ଜଗା ଭାରି ଖୁସି ହେଲା । କହିଲା' "ମୁଁ ଏଥର ରାଜାବାବୁଙ୍କର ସବୁ ହାଲ ଟିକିନଖି ବୁଝିବ । ରାଜାବାବୁ ଆଉ ରତନବାବୁ ବଡ଼ ମଣିଷ ହେବେ । ମୋର ପରି ଟିକେ ମଥା ଦୋଷ ଅଛି ବାବୁ । ବେଳେ ବେଳେ ମୋ ମଥାରେ କିଛି ପଶେନି । ମୁଁ ଭାବେ ମୋ ଦେଇ କିଛି କାମ ହେବନି । ରାଧାମୋହନବାବୁ ଖାଲି ହସିଦେଲେ ।

## ଭଲମନ୍ଦ କିପରି ଜାଣେ

ସେଦିନ ଜଗା ରାଧାମୋହନବାବୁଙ୍କ ପାଖରୁ ଢେର ସମୟ ଯାଏ ପିଲାଙ୍କ କଥା ଶୁଣୁଥିଲା । ଛୁଆର ଭଲମନ୍ଦ, ପାପ ପୁଣ୍ୟ, ବିଷୟରେ ରାଧାମୋହନବାବୁ ତାକୁ କେତେ କଥା କହିଥିଲେ । ଶ୍ରେଷ୍ଠ ଛୁଆର ମନ ଅତି କଅଁଳିଆ । କେତେ ଅବସ୍ଥା ନେଇ ଛୁଆ ମନରେ ଏସବୁ ଭାବନା ଆସେ ।

ବାପ-ମା' ଗୁରୁଜନ ଆଉ ଶିକ୍ଷକ ତା ମନରେ କେତେ ଭାବନା ଆଣି ଥାଆନ୍ତି । ଜଗା କହିଲା, "କେମିତି ?"

ରାଧାମୋହନବାବୁ କହିଲେ, "ଭଲ-ମନ୍ଦ, ନୀତି-ଅନୀତି ସେ ଜାଣି ନଥାଏ । ବଡ଼ମାନଙ୍କ ପାଖରୁ ଦେଖିଶିଖି ସେ ସେମିତି ବ୍ୟବହାର କରେ । ସମସ୍ତଙ୍କ ପାଇଁ ଯାହା ଭଲ ତାକୁ ତାହା ବୁଝାଇ ଦେବା ଦରକାର । ଯାହା ଖରାପ, ତାକୁ କରିବାକୁ ଦେବା ଠିକ୍ ନୁହେଁ । ବୟସ ବଢ଼ିବା ସାଙ୍ଗକୁ ପିଲାଟି ଏସବୁ ବୁଝିପାରେ ।

ଏଇ ଧର ଆମ ରତନ ଆଜି ଏଣୁ ତେଣୁ ପଚାରୁଚି । ଏଇଟା କାହିଁକି, କେମିତି ହୁଏ ପଚାରୁଚି । ଆଉ ଟିକେ ବଡ଼ ହେଲେ ସେ ନିଜେ ବୁଝିପାରିବ । ତାକୁ ବୁଝେଇଦେଲେ ସେ ଭଲଟା କରିବା ପାଇଁ ଚାହିଁବ । ଆଉ ଖରାପ ପାଖରୁ ଦୂରେଇ ଯିବ । ଛୁଆମାନଙ୍କୁ ନିୟମ ଆଉ ଶୃଙ୍ଖଳା ବିଷୟ ଶିଖାଇବା ଦରକାର । ତୁ ତ ଜାଣୁ ଭଲ କାମକଲେ ବାହାବା ମିଳେ । ଖରାପ କାମ କଲେ ନିନ୍ଦା ମିଳେ । ଭଲ କାମ ପାଇଁ ଆଗ୍ରହ ଦେଖାଇବା ଦରକାର । ଇମିତିକି ପୁରସ୍କାର କଥା ବୁଝାଇ ତାକୁ ଭଲ ବାଟରେ ନେବା ଦରକାର । ସେ ନିଜେ ବୁଝି ପାରିଲେ ଭଲ କାମ କରିବାକୁ ଆଗେଇବ ।

ଛୁଆଟି ଘରର ଚାରି କାନ୍ଥ ଭିତରେ କିଛି ଶିଖିଥାଏ । ଆଉ କିଛି ବାହାର ଦୁନିଆକୁ ଆସିଲେ ଶିଖିଥାଏ । ବାହାର ଦୁନିଆ ହେଲା ତାର ସାଙ୍ଗ ସାଥି, ପଡ଼ଶା, ଘର, ଚାଟଶାଳୀ ସବୁଠି ତାର କିଛି ନା କିଛି ଶିଖିବାର ଅଛି । ଯଦି ଘର କଥା ଆଉ ବାହାର କଥା ଅଲଗା ହୁଏ, ତେବେ ତାକୁ ଚଳିବାକୁ କଷ୍ଟ ଲାଗେ । ପୁଣି ତା ମନରେ ଅବିଶ୍ୱାସ ଆସେ । ଧର ତୋର

କଥା ଛୁଆକୁ ବୁଝାଇବାକୁ ପଡ଼ିଲା । ଗୋଟିଏ ଥିଲା ସବୁବେଳେ ଖରାପ । ଯେଉଁ ଅବସ୍ଥାରେ ହେଉ ପରର ଟଙ୍କା ନେବାଟା ଖରାପ। ପକେଟରୁ ହେଉ କି ବାକ୍ସରୁ ହେଉ।

ଜଗା କହିଲା—"ମାଆ ରାଜାବାବୁଙ୍କୁ ଖୁବ୍ ବୁଝାନ୍ତି । ଏଇଟା କଲେ ଭଲ ନୁହେଁ, ସେଇଟା କଲେ ଭଲ । ଏମିତି କେତେ କ'ଣ ? ସାନବାବୁ ପରା ମାଆଙ୍କ କଥା ମାନି ଦଣ୍ଡେ ବସିଯାନ୍ତି। ଖେଳନ୍ତି ନାହିଁ । ମାଡ଼ଗୋଳ କାହା ସାଥିରେ ଲଗାନ୍ତି ନାହିଁ । ମାଆ ବୁଝାଇ ଦିଅନ୍ତି କାହା ମନରେ ଦୁଃଖ ଦେବା ଠିକ୍ ନୁହେଁ। ସେ ଖୁବ୍ ସୁନା ଛୁଆ ଭଲଆ ସବୁ କଥା ମାନିଯାନ୍ତି । ବେଳେ ବେଳେ ମୋତେ ହଇରାଣ କରନ୍ତି ଯାହା । ଏତେ ହଇରାଣ ଯେ ମୋ ମଥା ଖରାପ ହୋଇଯାଏ।"

ରାଧାମୋହନ ବାବୁ କହିଲେ—ଛୁଆକୁ ଯାହା ଭଲ ଲାଗେ ସେ କରେ । ଭଲ ନ ଲାଗିଲେ କରେ ନାହିଁ । ଆମ ଭଲ ଗୋଟାଏ କାମ କରିଦେଇ ପରେ ଭୁଲି ହୁଏ ନାହିଁ । ମଥାରେ ଯାହା ପଶିଲା ପଶିଲାରେ । ଆମକୁ ପିଲାର ବଅସ ବଢିବା ସାଙ୍ଗେ ସାଙ୍ଗେ କିଛି କିଛି ବତାଇବାକୁ ପଡ଼େ । ବଡ଼ମାନଙ୍କ କଥା ନମାନିଲେ ଦଣ୍ଡ ପାଇବ ବୋଲି ସେ ଜାଣିବା ଦରକାର । ସେଇ ଅନୁଯାୟୀ ସେ ଠିକ୍ ଭୁଲ ବାଛୁଥାଏ। ବେଳେ ବେଳେ ଛୁଆମାନେ ବଡ଼ମାନଙ୍କ କଥା ମାନିବାକୁ ଚାହାଁନ୍ତିନି। ଆମ କଥା ଶୁଣନ୍ତି ନାହିଁ। ପାଞ୍ଚ ଛଅ ବରଷର ଛୁଆଟିଏ ଭୁଲ କାମଟିଏ କଲେ କେବେ ଭୁଲି ହୁଏ ନାହିଁ ଧରା ପଡ଼ିଗଲେ ଟିକେ ବ୍ୟସ୍ତ ହୁଏ ଯାହା।

ଛୁଆ ଆଉ ଟିକେ ବଡ଼ ହୋଇଗଲେ ସାଙ୍ଗ ସାଥିରେ ମିଶେ । ତାର ମତଟତ ବଦଳିଯାଏ । ଦଳର ନିୟମ ସେ ମାନିବାକୁ ଶିଖେ । ଧୀରେ ଧୀରେ ସେ ଖରାପ କାମ କରିବାକୁ ନାକ ଟେକେ । ଖଚ କହିବା, ମିଛ କହିବା, ଦୁଃଖୀକୁ ହଇରାଣ କରିବା, ସେ ସହି ପାରେନି । ବେଳେ ବେଳେ ବାପା କଡ଼ା ନିୟମ ଛୁଆ ଉପରେ ଦେଖାନ୍ତି । ମା'ଙ୍କର ନିୟମ ଟିକେ କୋହଳ ହୋଇଥାଏ । ପାଞ୍ଚ ଛଅ ବରଷ ବେଳେ ଛୁଆଟି "ମୋ ଜିନିଷ"—"ତୋ ଜିନିଷ" ଏମିତି କଥା ଶିଖେ ।

ବେଳେ ବେଳେ ନିୟମକାନୁନ୍ ଭିତରେ ବାପ ମା' ଛୁଆକୁ ମାଡ଼ ଦିଅନ୍ତି । ରତନ ବାପା ଆଉ ବୋଉ ରତନକୁ ମାଡ଼ ଦିଅନ୍ତି । ଏଇଟା ବେଳେ ବେଳେ ଖରାପ ଆଡ଼କୁ ନିଏ । ଛୁଆ ବେଶୀ ଦଣ୍ଡ ପାଇଲେ ବଡ଼ମାନଙ୍କର ଆଦର ଖୋଜେ । ଗାଳି ଦେଲେ କି ଧମକାଇଲେ ଛୁଆଟି କାହା ସାଥିରେ ବେଶୀ ମିଶିପାରେ ନାହିଁ । ତା ମନରେ ଦୁଃଖ ବେଶୀ ହୁଏ ।' ଜଗା କହିଲା, ସେଥିପାଇଁ ପରା ଆମ ରାଜା ବାବୁଙ୍କୁ ବେଶୀ ମାଡ଼ଗାଳି ଦିଆଯାଉନି ।

ରାଧାମୋହନ ବାବୁ କହିଲେ—"ଛୁଆଟିଏ ଯଦି କିଛି ବୁଣି ଦେଲା କି ଢାଳିଦେଲା ତାକୁ କାନ ଧରି ଠିଆ କରେଇବା ଠିକ ନୁହେଁ । ସେ ସେଇ ଜିନିଷ ଗୋଟାଇବା ଦରକାର । କାହା ବାଳ ସେ ଟାଣିଲେ, ତା କାନ ଟାଣିବା କେମିତି ଲାଗୁଛି—ଦେଖେଇବା ଦରକାର । । ଭଲ କାମ ପାଇଁ 'ଛୁଆ ମାନଙ୍କୁ ବାହାବା, ଉତ୍ସାହ ଦେବା କଥା । ତା'ମାନେ ନୁହେଁ ଲାଞ୍ଚ ଦେବା । ବେଳେ ବେଳେ ଛୁଆ ମିଛ କହେ, ଖେଳୁ-

ଥିବାବେଳେ । ବେଳେ ବେଳେ ଫୁଟାଣି ମାରି ମିଛ କହେ ପୁଣି କେତେବେଳେ ମାଡ଼ ଡରରେ ମିଛ କହେ । ଏସବୁ ଆମେ ଜାଣିବା ଦରକାର । ସାଙ୍ଗସାଥିଙ୍କୁ ରକ୍ଷା କରିବାକୁ ବି ମିଛ କହେ । ସବୁ କଥା ଆମେ ଜାଣି ତାର ବ୍ୟବସ୍ଥା କରିବା । ଜଗା ଖୁବ୍ ଜୋରରେ ହୁଁ ମାରି ଉଠିଲା ।

## ମେଳହୋଇ ଖେଳ

ସେଦିନ ରାଜା ଠକି ଦେଇଥାଏ ରତନକୁ । ମିଛ କଥା ବି ଯୋଡ଼ି ଦେଇଥାଏ ତା ସାଙ୍ଗକୁ । କଥାଟା ଧରା ପଡ଼ିଲା । ଜଗା ମାଆଙ୍କ ପାଖରୁ ସବୁ ଜାଣିଲା । ସେଦିନ ରତନ ରୁଷିଥାଏ । ମାଷ୍ଟର ବାବୁ ତାକୁ ବୁଝାଇ ଶୁଝାଇ ଚାଲିଗଲେ । ଜଗା ରାଜାବାବୁଙ୍କୁ କଅଁ କେଇ ସବୁ ପଚାରିଲା । ରାଜାବାବୁଙ୍କୁ ବୁଲେଇବାକୁ ଆଣିଥାଏ । ପିଣ୍ଡାରେ ପୁଣି ଏକାଠି ହୋଇଗଲେ ରାଜା ଆଉ ରତନ । ରାଧାମୋହନବାବୁ କହିଲେ—ଦେଖିଲୁ ଜଗା । ପିଲାମାନଙ୍କର ମୁହଁ ଫୁଲାଫୁଲି ବେଶୀ ବେଳଯାଏ ରହିଲାନି । ରତନ ପରା ଢେର ବେଳଯାଏ ମୁହଁ ମାଡ଼ି ଶୋଇ-ଥିଲା ।”

ଜଗା ଦୁହିଁଙ୍କୁ ଗେଲ କରି ପକାଇଲା । ରଧାମୋହନ ବାବୁ କହିଲେ—“ବଅସ ବଢ଼ିଲେ ପିଲାଏ ଠକିବାକୁ ଶିଖନ୍ତି । କିଏ କିନିଷପତ୍ରର ଲୁଚାଇ—କିଏ ଘରୁ ଚୋରି କରେ ତ କିଏ ମାଷ୍ଟରଙ୍କୁ ଠକେ । ନଅ ଦଶ ବର୍ଷ ବଅସରୁ ତେର ଚଉଦ ବରଷ ଯାଏ ପିଲାଏ ଏଭଳି କାମ କରନ୍ତି । ଖରାପ ସାଙ୍ଗ ସାଥିରେ ପଡ଼ି ଖରାପ ହୋଇଯାନ୍ତି । ଏଗୁଡ଼ା ଘରେ ସେମାନେ ଶିଖି ନଥାନ୍ତି । ଗରିବ ହେବାଟା ବି ଗୋଟିଏ କାରଣ ହୋଇପାରେ ।

ମିଛ କହିବା, ଘରୁ ଲୁଚି ପଳାଇବା ଗୋଟିଏ ଗୋଟିଏ ଖରାପ ଗୁଣ । କିଏ ଦଳରେ ପଡ଼ି, ଚୋରି କରେ ତ କିଏ ପାନ, ବିଡ଼ି, ସିଗାରେଟ ଖାଏ । ଏମିତି କେତେ କ'ଣ । ଜଗା କହିଲା, "ମୁଁ ତ ପିଲାବେଳେ ବିଡ଼ି, ସିଗାରେଟ ଟାଣୁଥିଲି । ଘରୁ ଲୁଚି ପଳାଉଥିଲି, ମୋ ମାଆ ମୋତେ ମାରିଧରି କଲାରୁ ସିନା ଛାଡ଼ିଲି । ଯାତରା ପାଟି ଆସିଲେ ଘରୁ ପଇସା ଚୋରି କରୁଥିଲି । ଲୁଚି ପଳାଉଥିଲି କେତେ ଦୂର । ହେଲେ ଆଜି ସବୁ ଛାଡ଼ିଛି ବାବୁ ।

ରାଧାମୋହନବାବୁ କହିଲେ ଗପ ଛଳରେ ଛୁଆମାନଙ୍କୁ କେତେକଥା ଶିଖାଇବା ଦରକାର । ରାମାୟଣ କଥା, ମହାଭାରତ କଥା ଆମ ରତନ ଶୁଣେ । ରାଜାକୁ ବି ମୁଁ ଶ୍ରବଣ କୁମାର ଆଉ ଅଭିମନ୍ୟୁ ଗପ ଶୁଣାଇଛି । ପୁରାଣ କଥାରୁ ପିଲାଏ ଢେର ଶିଖନ୍ତି । ମଣିଷକୁ ଭଲ ପାଇବାକୁ ପିଲାଏ ଶିଖନ୍ତି । କାହା ମନରେ କଷ୍ଟ ନଦେବା ପାଇଁ ଚାହାନ୍ତି । ପରର ଉପକାରରେ ମନଥାଏ ।

ଜଗା କହିଲା—"ଆମ ମାଆ ପରା ରାଜାବାବୁଙ୍କୁ ଦିଅଁ ଦେବତା କଥା କୁହନ୍ତି । ତେତିଶ କୋଟି ଦେବଦେବୀ କଥା କହନ୍ତି । ସେଦିନ ରାଜାବାବୁଙ୍କ ପରା କହୁଥିଲେ ଶିବ ଭାରି ରାଗି । ବିଷ୍ଣୁ ଭାରି ନରମ । ଲକ୍ଷ୍ମୀ, ସରସ୍ୱତୀ, ଦି' ଭଉଣୀ । ଏମିତି କେତେ କ'ଣ । ରାଧାମୋହନ ବାବୁ କହିଲେ – "ଜାତି ଜାତିକା ପୂଜାଅଁ ପରବ ଛୁଆଙ୍କ ମନରେ ଢୋକିଲେ ଧର୍ମ ଆଡ଼କୁ ମନ ଟାଣେ । କେଉଁ ପରବ କେଉଁ ଦିନରେ ପଡ଼େ—କ'ଣ ପାଇଁ ହୁଏ, ସେସବୁ ଛୁଆଙ୍କୁ ବୁଝାଇବା ଦରକାର । ହେଲେ ଧର୍ମ ନାଆଁରେ ଅନ୍ଧବିଶ୍ୱାସ, ଭୁଲ,

ବୁଝାମଣା ପିଲାଙ୍କ ମନରେ ଆଣିବା ଦରକାର ନୁହେଁ । ତା'
ବଅସକୁ ଚାହିଁ ତାକୁ ଧର୍ମ କଥା ଶିଖାଇବା ଦରକାର ।



ଛୁଆମାନଙ୍କୁ ଆଗ୍ରର ବ୍ୟବହାର ଶିଖାଇବା ଆମର ଦରକାର । ପ୍ରାର୍ଥନା କରିବା, ପୁନିଅଁ ପରବ ପାଳିବା, ଦେଉଳକୁ ଯିବାର କାରଣ ଛୁଆଙ୍କୁ ବୁଝାଇବା । ଛୁଆଟି ଜାଣିଲେ ଆଗ୍ରହୀ ହୁଏ । ଭଗବାନଙ୍କ ପାଇଁ ତା' ମନରେ ଭକତ ଠୁଳ ହୁଏ । ହେଲେ ସବୁ କଥା ବଡ଼ ହେଲେ ସେ ଜାଣିବାକୁ ଚାହେଁ । ଆଗପର ସବୁ କଥାକୁ ସହଜିଆ କରି ଦେଖେ ନାହିଁ ।"

ଜଗା କହିଲା—"ଆମ ରାଜା ରତନ ତ ପରିରାଇଜ କଥା ଶୁଣୁଚନ୍ତି—ଠାକୁର ଗପ ଶୁଣୁଚନ୍ତି । ଠାକୁର ଘରେ

ଧିଅଁଙ୍କୁ ଓଲଗି ହେଉଚନ୍ତି । ବଡ ହୋଇ ଗ୍ରହାଲୀ ଗଲେ ବି ଧର୍ମକୁ ଛାଡ଼ିବେ କେମିତି ?"

ରାଧାମୋହନବାବୁ କହିଲେ, "ଛୁଆ ମନରେ ଠିକ୍ ଧର୍ମକଥା ପୁରାଇବା ଦରକାର । ତା ମନରେ ଭଗବାନଙ୍କ ପାଇଁ ସନ୍ଦେହ ନ ଆସିଲେ ଭଲ । ପିଲାଙ୍କୁ ଭଗବାନଙ୍କଠାରେ ବିଶ୍ୱାସ କରିବା ଶିଖାଇବା ଦରକାର । ଭଗବାନଙ୍କୁ ଥରେ ଭଲ ପାଇଗଲେ ତାର କିଛି ଅସୁବିଧା ରହେନାହିଁ । ଆମ ନିତିଦିନିଆ କଥାରୁ ତାକୁ ଶୁଣାଇଲେ ସେ ଭଗବାନଙ୍କୁ ନିଜର ବୋଲି ଭାବିପାରିବ । ତା ମନରେ ଆଶା ଜମିଯିବ । ପିଲାଏ ଘରେ ବାହାରେ, ସ୍କୁଲରେ ଭଲ କଥା ଶିଖି ପାରିବେ । ନିଜକୁ ସେଇ ଚଳଣିରେ ଚଳାଇ ନେଲେ ଦେଶ, ଦଶର ନାଆଁ ରହିବ ।

ଗ୍ରେଟିଆ ଛୁଆ ମନରେ ବ୍ୟବହାରର ଖରାପ ଭାବନା ପ୍ରଥମେ ପଶି ନଥାଏ । ହେଲେ ପିଲାଟି ଆସ୍ତେ ଆସ୍ତେ ବଡ଼ ହେଲେ ସବୁ ଶିଖେ । ସିନେମା ଥିଏଟରେ ଅଭାବ ନାହିଁ ଏ ଯୁଗରେ । ଜଗା କହିଲା—"ମୋର କଥାରୁ ମୁଁ କ'ଣ ବୁଝି-ପାରୁନି ବାବୁ । ନାମଜାଦା ଥିଏଟର, ସିନେମା ପିଲାଏ ଦେଖିଲେ ସବୁ ବୁଝି ପାରିବେ । ପରକୁ ସାହାଯ୍ୟ କରିବା ଭଲ ପାଇବା, ଆଜି ସିନେମା ଥିଏଟରରୁ ବୁଝିପାରିଲେ ପିଲାର ଶିଖିବାରେ କିଛି ଅସୁବିଧା ହୁଏନି ।"

କଢ଼ିରୁ ଫୁଲ ଯେପରି ଫୁଟେ, ପିଲାଟି ଧୀରେ ଧୀରେ ସେମିତି ବଡ଼ ହୁଏ । ତାର ସବୁ କାମରେ, କଥାରେ ଭଲ ଆଚରଣ ଫୁଟି ଉଠିବା ଦରକାର । ରାଜା, ରତନ ଭଳି କେତେ ଛୁଆ ରହିଚନ୍ତି ଦୁନିଆରେ । ସଭିଏଁ ଏକା

ଅବସ୍ଥାରେ ବଢ଼ି ନାହାନ୍ତି । ଅବସ୍ଥାକୁ ନେଇ କିଏ ଚୋର ଖଣ୍ଡ ହୁଏ । ପୁଣି କିଏ ରାମ, କୃଷ୍ଣ ହୋଇପାରେ ।

## ପିଲାଙ୍କୁ ଗେଲ କରିବା ଖରାପ କଥା

ଜଗା ଦିନେ ଆସି କହିଲା—"ବାବୁ ! ମାଆ ଖାଲି ରାଜାବାବୁ ପାଇଁ ବ୍ୟସ୍ତ ହେଉଛନ୍ତି । ତାଙ୍କର ଶାସନ ଦରକାର ମଣିଷ ପଣିଆ ଦରକାର ଏମିତ କେତେ କ'ଣ । ଠିକ ସମୟରେ ନଖାଇଲେ, ନଶୋଇଲେ ମାଆ ଚଢ଼ି-ଯାଆନ୍ତି ।

ରାଧାମୋହନବାବୁ କହିଲେ "ସବୁ ମାଆଙ୍କର ଦାୟିତ୍ୱ ଅଛି । ପିଲାଏ ଠିକ ସମୟରେ ନ ଖାଇଲେ, ନ ଶୋଇଲେ ମାଆମାନେ ବ୍ୟସ୍ତ ହୁଅନ୍ତି । ବାପ ମାଆଙ୍କର ଛୁଆ ଉପରେ ଭାରି ଆଶା ଥାଏ । ଛୁଆମାନେ ନଷ୍ଟ ଚରିତ୍ର ହୋଇଗଲେ ବାପା ମା'ଙ୍କୁ ବାଧିବନି ? ସବୁ ବାପ ମା' ଛୁଆଙ୍କର ସ୍ୱଭାବ ଚରିତ୍ର ବଦଳାଇବାକୁ ଚାହାଁନ୍ତି । ପିଲା କପରି ଭଲ ମଣିଷ ହେଉ, ସବୁ ବାପ ମା' ଚିନ୍ତା କରନ୍ତି ।"

କିଏ ଛୁଆକୁ ଅତି ଗେହ୍ଲା କରିଥାଏ—ଯଦି କେହି ଛୁଆର ଶାସନ କୋହଲି କରିଦିଏ ତାହାର ଛୁଆଟି ଯାହା ଚାହେଁ ତାହା କରେ । ବେଳେ ବେଳେ ଛୁଆର ସବୁ ଅଳି ଅଝଟ ବାପ ମା' ପୂରଣ କରନ୍ତି କାଳେ ଛୁଆ ମନରେ ଆଘାତ ଲାଗିବ । ହେଲେ ଭବିଷ୍ୟତରେ ସେଇ ପିଲା ବେଳେ ବେଳେ ଅତି ଅସୁବିଧାରେ ପଡ଼େ । ବାପ ମା'ଙ୍କ ପାଖରୁ ପାଇଥିବା ଆଦର ସାଙ୍ଗସାଥିଠାରୁ ଆଶାକରେ । ମାଷ୍ଟରଙ୍କ ପାଖରୁ ବି ଆଶାକରେ । କେହି ତାକୁ ରୋକିଲେ ସେ ରାଗିଯାଏ—ତା' ମନରେ କଷ୍ଟ ହୁଏ । ପାଠପଢ଼ା ଉପରେ ନଜର ରହେନି ।

ସେଇ ବାଟରେ ଗ୍ଳିଲେ । ପିଲାମାନଙ୍କ ପାଇଁ ଗୁରୁ ପରି ଚଳନ୍ତ ଠାକୁର ।

ଆଉ ଦିନେ ରାଧାମୋହନବାବୁ ପିଲାମାନଙ୍କର ମନର କେତେ ଦୋଷ କଥା କହିଲେ । "ଏମିତି ପିଲା ଅଛି, ଯିଏ ଦିନରାତି ସବୁ କଥାରେ ନାହିଁ—ନାହିଁ କରୁଥାଏ । ସବୁ କଥାରେ ତାର ବିରୋଧ କରିବା ଭାବ ଜଣାପଡ଼େ । ସେଭଳି ପିଲାକୁ ଜବରଦସ୍ତି ଶାସନ କରିବା କଥା ନୁହେଁ, ଆଉ କେଉଁ ପିଲା ସହଜରେ କୌଣସି କଥା ସମାଧାନ କରି ପାରେନି । ବେଳେ ବେଳେ ନିଷ୍ପତ୍ତି ନେବାରେ ଡେରି କରେ । ସେଭଳି ପିଲାମାନଙ୍କୁ ଘର, ବାହାର, ସ୍କୁଲ ପରିବେଶ ଭଲ ଲାଗେନି । ବାପ ମା' ସେଭଳି ପିଲାକୁ ଗାଳି ନ ଦେଇ ବୁଝାଇ ଦେବା ଦରକାର । ଶିକ୍ଷକ ବି ସେଇ ଉପାୟରେ ଚଳିବା ଦରକାର । କେଉଁଟା ବଡ଼ ସମସ୍ୟା କେଉଁଟା ସାନ ସମସ୍ୟା ପିଲାଟି ଜାଣିବା ଦରକାର । ତା'ପରେ ଯଦି ପିଲାଟା ଭୁଲ ନିଷ୍ପତ୍ତି ନିଏ, ତେବେ ତାକୁ ବୁଝାଇ ଦେବା ଦରକାର ।"

ଜଣେ କହିଲା "ସେଦିନ ତୁମେ ପରି କହୁଥିଲ ମହାବୀର ନେପୋଲିୟନ ଗେଡ଼ା ଥିଲେ । ହେଲେ ମନ ତାଙ୍କର ଭାରି ଟାଣ ।" ପିଲାମାନଙ୍କର କିଛି ଅସୁବିଧା ଥିଲେ ବି ବାପ ମା'ଙ୍କର ନଜର ଥିଲେ ପିଲାଟି ସବୁକୁ ଏଡ଼ାଇ ପାରିବ । ତାପରେ ସ୍କୁଲ କଥା । ସେଠି ମାଷ୍ଟରମାନଙ୍କର ଆଖି ତ' ରହିଛି, ରହିଥିବ । ଆଉ ପିଲାଏ ଏତେ କଷ୍ଟ ଭୋଗିବେନି । ଏ କାଳକୁ ତ ସବୁ ସୁବିଧା ହୋଇଗଲାଣି । ପିଲାଟି ଗ୍ଲେଟା, କେମ୍ପା, କୁଜା ହେଲେ ବି ତାଙ୍କ ପାଇଁ ଭଲ

ସୁବିଧା ଅଛି । ଘରେ ବାହାରେ ସଭିଙ୍କର ନଜର ଥିଲେ ପିଲାଏ ମଣିଷ ହୋଇ ପାରିବେ ।

ରାଧାମୋହନବାବୁ ହସିଲେ, କହିଲେ—"ଜଗା କଥାରେ ଅସଲ ମଞ୍ଜି ଅଛି । ବାହାରକୁ ଜଣା ପଡ଼ୁନି କିଛି । ଜଗା ଭଳି ସଭିଙ୍କର ମନ ଥିଲେ ସମସ୍ତେ ସୁବିଧା ଅସୁବିଧା ବୁଝିପାରିବେ । ଜଗା କହିଲା—"ତୁମ କଥା ଶୁଣି ଶୁଣି ମୋତେ ବି ପାଠ ପଢ଼ିବାକୁ ମନ ହେଲାଣି ।" ରାଧାମୋହନବାବୁ ହସିଲେ । ରାଜା ଆଉ ରତନ ଧାଇଁ ଆସିଲେ । ରାଜା "ଜଗା ଜଗା" ଡାକି ଘରକୁ ଯିବାକୁ ଉଠିଲା । ଜଗା ହସୁଥିଲା ରାଧାମୋହନ ବାବୁଙ୍କୁ ଅନାଇଁ ।

